॥ ଶ୍ରୀହରିଃ ॥

# ସାଧନାର ଦୁଇଟି ପ୍ରଧାନ ସୂତ୍ର

साधनके दो प्रधान सूत्र (ओड़िआ)

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

## ସ୍ୱାମୀ ରାମସୁଖଦାସ

॥ ଶ୍ରୀହରିଃ ॥

# ବିନମ୍ର ନିବେଦନ

ସତ୍ସଙ୍ଗରେ ଆଲୋଚିତ ଅନେକ ରହସ୍ୟମୟ ବିଷୟକୁ ଗଭୀରଭାବେ ବୁଝି ନ ପାରିବାରୁ ଅଧିକାଂଶ ସାଧକଙ୍କ ମନରେ ନାନାପ୍ରକାର ସନ୍ଦେହ ଅଙ୍କୁରିତ ହୋଇଥାଏ ଯେ, ଯଦି ଆମର କିଛି ଦରକାର ନାହିଁ, ତେବେ ଆମେ ସାଧନ, ଭଜନ ଇତ୍ୟାଦି କାହିଁକି କରିବୁ? ଯଦି କେହି ହେଲେ ଆମର ଆପଣାର ନୁହନ୍ତି, ତେବେ ଆମେ ଅନ୍ୟମାନଙ୍କର ସେବା କାହିଁକି କରିବୁ? ଇତ୍ୟାଦି ଇତ୍ୟାଦି । ବାସ୍ତବରେ ଶରୀର ସହିତ ସମ୍ବନ୍ଧ ସ୍ୱୀକାର କରିବାରୁ ହିଁ ଏପରି ଅନେକାନେକ ସନ୍ଦେହ ଜାତ ହୁଏ । ଉକ୍ତ ବିଷୟଗୁଡ଼ିକୁ 'ସାଧନାର ଦୁଇଟି ପ୍ରଧାନ ସୂତ୍ର' ନାମରେ ପ୍ରସ୍ତୁତ ଏହି ପୁସ୍ତକରେ ଅତି ସରଳ ଓ ସୁନ୍ଦର ଶୈଳୀରେ ପ୍ରାଞ୍ଜଳଭାବେ ବୁଝାଇ ଦିଆଯାଇଛି । ଆଶା କରୁ, ପ୍ରତ୍ୟେକ ସାଧକଙ୍କ ପାଇଁ ଏ ବହିଟି ଅତ୍ୟନ୍ତ ଉପାଦେୟ ହେବ । ସାଧକମାନଙ୍କ ନିକଟରେ ଆମର ବିନମ୍ର ନିବେଦନ ଯେ ଏହି ବହିଟିକୁ ସେମାନେ ମନୋଯୋଗପୂର୍ବକ ପଢ଼ିବେ ଏବଂ ସତ୍ୟ ତଥ୍ୟଗୁଡ଼ିକୁ ସ୍ୱୀକାର କରି ନିଜର ଜୀବନ ଧନ୍ୟ କରିବେ ।

—**ପ୍ରକାଶକ**

॥ ଶ୍ରୀହରିଃ ॥

# ସୂଚୀପତ୍ର

| ବିଷୟ | | ପୃଷ୍ଠାଙ୍କ |
|---|---|---|


***

॥ ଶ୍ରୀହରିଃ ॥

# ୧. ସାଧନାର ଦୁଇଟି ପ୍ରଧାନ ସୂତ୍ର

ଚଉରାଶୀ ଲକ୍ଷ ଯୋନିରେ ଘୂରି ବୁଲୁଥିବା ଜୀବକୁ ପରମ ପିତା ପରମାତ୍ମା କେବେ କେବେ ତାଙ୍କର ଅହୈତୁକୀ କୃପା ହେତୁ ମାନବଶରୀର ପ୍ରଦାନ କରିଥାନ୍ତି । ଏହି ଦେବଦୁର୍ଲଭ ମାନବଶରୀର ଦ୍ୱାରା ହିଁ ଜୀବ ଅତି ସହଜରେ ଆତ୍ମକଲ୍ୟାଣ କରିପାରେ । ସେଥିପାଇଁ ଗୋସ୍ୱାମୀ ଶ୍ରୀ ତୁଳସୀଦାସ କହିଛନ୍ତି—

**ବଡ଼େ ଭାଗ ମାନୁଷ ତନୁ ପାୱା । ସୁର ଦୁର୍ଲଭ ସବ ଗ୍ରଂଥହ୍ନି ଗାୱା ॥**
**ସାଧନ ଧାମ ମୋଚ୍ଛ କର ଦ୍ୱାରା । ପାଇ ନ ଜେହିଁ ପରଲୋକ ସଁୱାରା ॥**

(ମାନସ, ଉତ୍ତର. ୪୩ । ୪)

ଜୀବ ସଂସାର-ବନ୍ଧନରୁ ମୁକ୍ତ ହୋଇ ଯେପରି ସବୁଦିନ ପାଇଁ କୃତକୃତ୍ୟ, ଜ୍ଞାତଜ୍ଞାତବ୍ୟ ଓ ପ୍ରାପ୍ତପ୍ରାପ୍ତବ୍ୟ ହୋଇ ପାରିବ, ସେଥିପାଇଁ ଭଗବାନ ତାକୁ ମାନବଶରୀର ପ୍ରଦାନ କରିଛନ୍ତି । କିନ୍ତୁ ଦୁଃଖର କଥା ଯେ ମନୁଷ୍ୟ ନିଜ ଉଦ୍ଦେଶ୍ୟ ପ୍ରତି ପରାଙ୍ମୁଖ ହୋଇ ଭୋଗ ଉପଭୋଗ କରିବା ତଥା ଧନ-ସମ୍ପତ୍ତି ସଂଗ୍ରହ କରିବାରେ ମାତିଛି! ଏପରି ସଂସାରାସକ୍ତ ମନୁଷ୍ୟମାନଙ୍କ ମଧ୍ୟରୁ କେହି କେହି ସନ୍ଥକୃପା ଅଥବା ଭଗବତ୍‌କୃପା ବଳରେ ସାଧନାରେ ମନୋନିବେଶ କରୁଥିଲେ ମଧ୍ୟ ସେମାନେ ନିଜ ନିର୍ଣ୍ଣୟରେ ଅଟଳ ରହିପାରୁ ନାହାନ୍ତି । ନିର୍ଣ୍ଣୟ ଦୃଢ଼ ନ ହେବା ଫଳରେ ସେମାନଙ୍କ ଜୀବନ ସାଧନାମୟ

ହୋଇପାରୁ ନାହିଁ। ଜୀବନ ସାଧନାମୟ ନ ହେବା ଯୋଗୁଁ ସେମାନେ ବିଭିନ୍ନ ସ୍ଥାନରୁ କେବଳ ଗୁଡ଼ାଏ ସତ୍ସଙ୍ଗ କଥା ଶିଖିଯାଇ ବକ୍ତା ଅଥବା ଲେଖକ ବୋଲାଉଛନ୍ତି। ଏପରି ଲୋକେ ବକ୍ତା ଅଥବା ଲେଖକ ହୋଇଯାଆନ୍ତି, କିନ୍ତୁ ପରମଶାନ୍ତି ଲାଭ କରି ପାରନ୍ତି ନାହିଁ। ଜୀବନକୁ ସାଧନାମୟ କରି ଗଢ଼ି ତୋଳିବା ପାଇଁ ସାଧକ ନିମ୍ନୋକ୍ତ ଦୁଇଟି ସୂତ୍ରକୁ ଦୃଢ଼ଭାବେ ସ୍ୱୀକାର କରିବା ଉଚିତ—

(୧) ସଂସାରରେ ମୋର ବୋଲି କିଛି ନାହିଁ, ମୋର କିଛି ଦରକାର ନାହିଁ ଏବଂ ମୋର କାହା ସହିତ କୌଣସି ସମ୍ବନ୍ଧ ନାହିଁ।

(୨) କେବଳ ଭଗବାନ ହିଁ ମୋର ଆପଣାର।

ଉକ୍ତ ସୂତ୍ର ଦ୍ୱୟ ମଧ୍ୟରୁ ପ୍ରଥମଟି ସଂସାରରୁ ସମ୍ବନ୍ଧ ତୁଟାଇଦେବ ଏବଂ ଦ୍ୱିତୀୟଟି ଭଗବାନଙ୍କ ସହିତ ଭେଟାଇ ଦେବ। ପ୍ରଥମ ସୂତ୍ରଟିକୁ ଦୃଢ଼ତାର ସହିତ ସ୍ୱୀକାର କଲେ 'ମୁକ୍ତି' ମିଳିଯିବ ଏବଂ ଦ୍ୱିତୀୟଟିକୁ ଦୃଢ଼ତାର ସହିତ ସ୍ୱୀକାର କଲେ 'ଭକ୍ତି' ମିଳିଯିବ। ସୁତରାଂ ବିବେକପ୍ରଧାନ ସାଧକ ପାଇଁ ପ୍ରଥମଟି ଅଧିକ ଉପାଦେୟ ଏବଂ ସେ ଏହାକୁ ହୃଦୟରେ ସ୍ୱୀକାର କରିବା ଉଚିତ। ବିବେକପ୍ରଧାନ ଓ ଭାବପ୍ରଧାନ ଉଭୟ ପ୍ରକାର ସାଧକ ପରିଣାମରେ କୃତକୃତ୍ୟ, ଜ୍ଞାତଜ୍ଞାତବ୍ୟ ଓ ପ୍ରାପ୍ତପ୍ରାପ୍ତବ୍ୟ ହୋଇଯାଇ ପାରିବେ। ସେମାନଙ୍କର ମନୁଷ୍ୟଜନ୍ମ ସଫଳ ହୋଇଯିବ। ଉପରୋକ୍ତ ବିଷୟଗୁଡ଼ିକୁ କେବଳ ଶିଖିଗଲେ ଚଳିବ ନାହିଁ, ବରଂ ଦୃଢ଼ତାର ସହିତ

ସ୍ୱୀକାର କରିବାକୁ ହେବ । ଶିଖିଥିବା ବିଷୟକୁ ବ୍ୟକ୍ତି ଭୁଲିଯାଇ ପାରେ, କିନ୍ତୁ ହୃଦୟର ସହ ସ୍ୱୀକାର କରାଯାଇଥିବା ବିଷୟକୁ ମନୁଷ୍ୟ ଭୁଲିପାରେ ନାହିଁ, ତାହା କଦାପି ବିସ୍ମୃତ ହୁଏ ନାହିଁ ।

ଏବେ ପ୍ରଶ୍ନ ଉଠେ, ଯଦି କେହିହେଲେ ଆମର ନୁହନ୍ତି, ତେବେ ପିତା-ମାତାଙ୍କର ସେବା କାହିଁକି କରିବା? ଜୀବନରେ ବ୍ୟବହାର୍ଯ୍ୟ ଦ୍ରବ୍ୟଗୁଡ଼ିକର ରକ୍ଷଣାବେକ୍ଷଣ କାହିଁକି କରିବା? ଯଦି ଆମର କିଛି ଦରକାର ନାହିଁ, ତେବେ ଅନ୍ନ-ଜଳର ଆବଶ୍ୟକତା କ'ଣ? ଯଦି କାହା ସହିତ ଆମର କୌଣସି ପ୍ରକାର ସମ୍ବନ୍ଧ ନାହିଁ, ତେବେ ଅନ୍ୟମାନଙ୍କୁ ସାହାଯ୍ୟ କରିବା କାହିଁକି? ଏହାଛଡ଼ା ପତ୍ନୀ ଭାବିପାରେ, ଯଦି ଭଗବାନ ହିଁ ମୋର ଆପଣାର, ତେବେ ମୁଁ ସ୍ୱାମୀଙ୍କର ସେବା କାହିଁକି କରିବି? ଏପରି ବିବିଧ ପ୍ରଶ୍ନ ଜାତ ହେବାର ମୂଳ କାରଣ ହେଉଛି ଯେ ସାଧକ ଶରୀର ସହିତ ତାଦାତ୍ମ୍ୟ କରି, ତା' ସହିତ ମିଶି ରହି ଉପର୍ଯ୍ୟୁକ୍ତ ବିଷୟକୁ ସ୍ୱୀକାର କରୁଛି । ଶରୀର ସହିତ 'ମୁଁ ଓ ମୋର' ରୂପୀ ସମ୍ବନ୍ଧ (ତାଦାତ୍ମ୍ୟ) ସ୍ୱୀକାର କରିବା ହିଁ ବନ୍ଧନର ମୂଳ କାରଣ । ଏଥିପାଇଁ ଆମର ଆତ୍ମସ୍ୱରୂପ ବିଷୟରେ ଗୋସ୍ୱାମୀ ତୁଳସୀଦାସ କହିଛନ୍ତି—

**ଈସ୍ୱର ଅଂସ ଜୀୱ ଅବିନାସୀ । ଚେତନ ଅମଲ ସହଜ ସୁଖ ରାସୀ ॥**

(ମାନସ, ଉତ୍ତର. ୧୧୭ । ୧)

ବର୍ତ୍ତମାନ ଏହା ଉପରେ ଆଲୋଚନା କରାଯାଉ—

*'ଈସ୍ୱର ଅଂସ ଜୀୱ'*—ଜୀବ ସ୍ୱୟଂ ଭଗବାନଙ୍କର ଅଂଶ ଏବଂ ଭଗବାନ ହେଉଛନ୍ତି ତା'ର ଅଂଶୀ । ଭଗବାନ

କହିଛନ୍ତି—**'ମମୈବାଂଶୋ ଜୀବଲୋକେ'** (ଗୀତା ୧୫ । ୭) । ଭଗବାନ ଯେପରି ସତ୍-ଚିତ୍-ଆନନ୍ଦସ୍ୱରୂପ, ଜୀବ ମଧ୍ୟ ସେହିପରି ସତ୍-ଚିତ୍-ଆନନ୍ଦସ୍ୱରୂପ । ଜଣେ ମାଆ ଉପରେ ତା'ର ସବୁ ପୁଅଙ୍କର ଯେପରି ସମାନ ଅଧିକାର ଥାଏ, ସେହିପରି ପରମ ପିତା ପରମାତ୍ମାଙ୍କ ଉପରେ ପ୍ରତ୍ୟେକ ମାନବର ସମାନ ଅଧିକାର ରହିଛି । ଜଣେ ରାଜକୁମାର ଯଦି ନିଜକୁ ରାଜପୁତ୍ର ମନେ ନ କରି, ନିଜର ବାସ୍ତବିକତାକୁ ଭୁଲିଯାଇ ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗେ, ତେବେ ରାଜାଙ୍କୁ ଆଶ୍ଚର୍ଯ୍ୟ ଲାଗିବା ସହିତ ତାଙ୍କ ମନରେ ଅପାର ଦୁଃଖ ହେବ । ସେହିପରି ସାଂସାରିକ ଭୋଗ ଓ ସଂଗ୍ରହରେ ଲିପ୍ତ ମନୁଷ୍ୟକୁ ଦେଖି ଭଗବାନଙ୍କୁ ବଡ଼ ଦୁଃଖ ଲାଗେ । ସେ ଭାବନ୍ତି, ହାୟ! ଏ ଜୀବ ମୋ ପାଖକୁ ନ ଆସି ନିଜକୁ ନିଜେ ପତନଗର୍ତ୍ତ ମଧ୍ୟକୁ ଠେଲି ଦେଉଛି—**'ମାମପ୍ରାପ୍ୟୈବ କୌନ୍ତେୟ ତତୋ ଯାନ୍ତ୍ୟଧମାଂ ଗତିମ୍'** (ଗୀତା ୧୬ । ୨୦) ।

ସାଧକ ତା' ମନରେ ଗର୍ବ (ସ୍ୱାଭିମାନ) ଅନୁଭବ କରିବା ଉଚିତ ଯେ ସେ ଭଗବାନଙ୍କର ଅଂଶ ଏବଂ ଭଗବାନ ତା'ର ଅତି ଆପଣାର—

**ଅସ ଅଭିମାନ ଜାଇ ଜନି ଭୋରେ । ମୈଁ ସେୱକ ରଘୁପତି ପତି ମୋରେ ॥**

(ମାନସ, ଅରଣ୍ୟ. ୧୧ । ୧୧)

ତ୍ରୈଲୋକ୍ୟାଧିପତି ପରମ ପିତା ପରମାତ୍ମାଙ୍କର ସନ୍ତାନ ହୋଇ ଆମେ ଅତ୍ୟନ୍ତ ତୁଚ୍ଛ ନାଶବାନ୍ ସଂସାର ଆଗରେ ହାତ ପତାଇବା କାହିଁକି? ସଂସାର ଆଡ଼କୁ ମୁହାଁଉଥିବା ବ୍ୟକ୍ତିକୁ

ସଂସାର ନିଜର କ୍ରୀତଦାସ କରିରଖେ। କିନ୍ତୁ ପରମାତ୍ମାଙ୍କ ସମ୍ମୁଖୀ ହେଉଥିବା ବ୍ୟକ୍ତିର ଜୀବନ ଧନ୍ୟ ହୋଇଯାଏ, ଭଗବାନ ନିଜେ ତା'ର ଦାସ ବା ଅଧୀନ ହୋଇଯାଆନ୍ତି—**'ଅହଂ ଭକ୍ତପରାଧୀନଃ'** (ଶ୍ରୀମଦ୍‌ଭା. ୯।୪।୬୩); ***'ମୁଁ ଅଟେ ଭକତର ଦାସ। ଭକତ ମୋହର ସର୍ବସ୍ୱ'!*** ଏପରି ପରମ ସୁହୃଦ ପ୍ରଭୁଙ୍କୁ ଛାଡ଼ି ସଂସାରରୁ କିଛି ପାଇବାକୁ ଆଶା କରିବା କେତେ ନିର୍ବୋଧତା ନୁହେଁ ସତେ!

*'ଅବିନାସୀ'*—ପରମାତ୍ମା ହେଉଛନ୍ତି ଅବିନାଶୀ। ତେଣୁ ତାଙ୍କର ଅଂଶ ହୋଇଥିବାରୁ ଜୀବ ମଧ୍ୟ ଅବିନାଶୀ—**'ଅବିନାଶୀ ତୁ ତଦ୍ ବିଦ୍ଧି'** (ଗୀତା ୨।୧୭)। କିନ୍ତୁ ଜୀବ ନିଜେ ଅବିନାଶୀ ହୋଇ ମଧ୍ୟ ନାଶବାନ୍ ଶରୀର ଓ ସଂସାର ସହିତ ସମ୍ବନ୍ଧ ସ୍ୱୀକାର କରୁଛି—

**ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ।**
**ମନଃଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି॥**

(ଗୀତା ୧୫।୭)

''ଏ ସଂସାରରେ ଜୀବ ପାଲଟି ଯାଇଥିବା ଆତ୍ମା ମୋର ହିଁ ସନାତନ ଅଂଶ; କିନ୍ତୁ ସେ ପ୍ରକୃତିସ୍ଥ ମନ ଓ ପଞ୍ଚ ଇନ୍ଦ୍ରିୟଙ୍କୁ ଆକର୍ଷିତ କରୁଛି ଅର୍ଥାତ୍ ଏମାନଙ୍କୁ ନିଜର ମନେ କରୁଛି।''

ପ୍ରକୃତିର ଅଂଶ ଏତେ ସାଧୁ ଯେ ସେ ସର୍ବଦା ପ୍ରକୃତିରେ ହିଁ ସ୍ଥିତ ରହୁଛି—**'ପ୍ରକୃତିସ୍ଥାନି'**। କିନ୍ତୁ ଜୀବ ପରମାତ୍ମାଙ୍କର ଅଂଶ ହୋଇ ମଧ୍ୟ ପରମାତ୍ମାଙ୍କ ଠାରେ ସ୍ଥିତ ହେବା ପରିବର୍ତ୍ତେ

ପ୍ରକୃତିର ଅଂଶ (ଶରୀର) ସହିତ ଆତ୍ମୀୟ ସମ୍ବନ୍ଧ ସ୍ଥାପନ କରୁଛି! ଏହି କଳ୍ପିତ ସମ୍ବନ୍ଧ କାରଣରୁ ତାକୁ ବାରମ୍ବାର ଜନ୍ମ-ମରଣ ଚକ୍ରରେ ଘୂରିବାକୁ ପଡ୍ଡୁଛି।

*'ଚେତନ'*—ପରମାତ୍ମାଙ୍କ ଅଂଶ ହିସାବରେ ଜୀବ ହେଉଛି ଚିତ୍‌ସ୍ୱରୂପ। ପ୍ରତ୍ୟେକ ଜଡ଼ ପଦାର୍ଥ ମିଳେ ଓ ଛାଡ଼ି ଚାଲିଯାଏ। ଅମାବାସ୍ୟାର ଅନ୍ଧକାର ରାତ୍ରି ସହିତ ସୂର୍ଯ୍ୟଙ୍କର ମିଳନ ଯେପରି ଅସମ୍ଭବ, ଜଡ଼ ପଦାର୍ଥ ସହିତ ସେହିପରି ଚେତନର ମିଳନ ଅସମ୍ଭବ। ଅତଏବ ଜଡ଼ ସହିତ ଚେତନର ସମ୍ବନ୍ଧ କେବଳ କୃତ୍ରିମ ଏବଂ କଳ୍ପନାମାତ୍ର। ଏଥିରେ ଲେଶମାତ୍ର ବାସ୍ତବିକତା ନାହିଁ।

*'ଅମଳ'*—ପରମାତ୍ମାଙ୍କର ଅଂଶ ହୋଇଥିବାରୁ ଜୀବ ସ୍ୱୟଂ ନିର୍ମଳ ଓ ନିର୍ଦୋଷ। ସେଥିପାଇଁ ଗୀତାରେ ଭଗବାନ କହିଛନ୍ତି—

**ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ।**
**ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନ ଲିପ୍ୟତେ॥**

(ଗୀତା ୧୩।୩୧)

"ହେ କୁନ୍ତୀନନ୍ଦନ! ଏହି ପୁରୁଷ ସ୍ୱୟଂ ଅନାଦି ଓ ଗୁଣମାନଙ୍କ ଠାରୁ ଅତୀତ ହୋଇଥିବାରୁ ଅବିନାଶୀ ପରମାତ୍ମାଙ୍କର ସ୍ୱରୂପ ଅଟେ। ଶରୀରରେ ରହୁଥିଲେ ମଧ୍ୟ ପୁରୁଷ ବାସ୍ତବରେ କିଛି କରାଏ ନାହିଁ କି କେଉଁଥିରେ ଲିପ୍ତ ହୁଏ ନାହିଁ ଅର୍ଥାତ୍ କର୍ତ୍ତା ହୁଏ ନାହିଁ କି ଭୋକ୍ତା ହୁଏ ନାହିଁ।"

କାମ-କ୍ରୋଧାଦି ସମସ୍ତ ଦୋଷ ଆଗନ୍ତୁକ ଅଟନ୍ତି। କିନ୍ତୁ

ଶରୀର ସହିତ ତାଦାତ୍ମ୍ୟ କରିଥିବାରୁ ଅଜ୍ଞାନୀ ମନୁଷ୍ୟ ନିଜକୁ କାମୀ, କ୍ରୋଧୀ, ଲୋଭୀ ଇତ୍ୟାଦି ମନେକରେ। କୌଣସି ଦୋଷ ଜୀବଠାରେ ସବୁ ସମୟ ପାଇଁ ସ୍ଥାୟୀ ହୋଇ ରହେ ନାହିଁ, ସବୁକିଛି ଆସେ ଏବଂ ଚାଲିଯାଏ—**'ଆଗମାପାୟିନୋଽନିତ୍ୟାଃ'** (ଗୀତା ୨।୧୪)। କିନ୍ତୁ ଜୀବର ସ୍ୱରୂପ (ଆତ୍ମା) ସବୁ ସମୟରେ ଯଥାବତ୍ ବିଦ୍ୟମାନ ରହିଥାଏ। ସମସ୍ତ ଦୋଷ ଜଡ଼-ବିଭାଗରେ ପରିଲକ୍ଷିତ ହୁଏ, ଚେତନ-ବିଭାଗରେ ଦୋଷର ସ୍ଥାନ ନାହିଁ। ସ୍ୱୟଂ ନିକଟରେ କୌଣସି ଦୋଷ ପହଞ୍ଚି ପାରେ ନାହିଁ। ସ୍ୱୟଂ ନିତ୍ୟ-ନିରନ୍ତର ନିର୍ଦୋଷ ରହିଥାଏ।

*'ସହଜ ସୁଖ ରାସୀ'*—ସଂସାର ହେଉଛି ଦୁଃଖସ୍ୱରୂପ—**'ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ'** (ଗୀତା ୫।୨୨); **'ଦୁଃଖାଲୟମଶାଶ୍ୱତମ୍'** (ଗୀତା ୮।୧୫)। ଦୁଃଖରୂପ ସଂସାର ସହିତ ଜୀବ 'ମୁଁ ଓ ମୋର' ଭାବନା କରି ଦୁଃଖ ପାଉଛି। ବାସ୍ତବରେ ଜୀବ ପରମାତ୍ମାଙ୍କର ଅଂଶ ହୋଇଥିବାରୁ ସୁଖର ଭଣ୍ଡାର ଅଟେ। ଏହି କାରଣରୁ ଶରୀର ଓ ସଂସାରଠାରୁ ସମ୍ବନ୍ଧ ତୁଟାଇଦେବା ମାତ୍ରେ ସାଧକକୁ ନିଜ ମଧ୍ୟରେ ଥିବା ସହଜ, ଅକ୍ଷୟ ତଥା ଆତ୍ୟନ୍ତିକ ସୁଖ ଅନୁଭବ ହୋଇଥାଏ—**'ସ ବ୍ରହ୍ମଯୋଗଯୁକ୍ତାତ୍ମା ସୁଖମକ୍ଷୟମଶ୍ନୁତେ'** (ଗୀତା ୫।୨୧); **'ସୁଖମାତ୍ୟନ୍ତିକଂ ଯତ୍ତଦ୍ ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟମ୍'** (ଗୀତା ୬।୨୧)। ଘରେ ସ୍ପର୍ଶମଣି ଥିଲେ ମଧ୍ୟ ତାହାକୁ ଚିହ୍ନି ନ ପାରୁଥିବା ଅଜ୍ଞାନୀ

ବ୍ୟକ୍ତି ଧନ ଅଭାବରେ ଯେପରି ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗୁଥାଏ, ସେହିପରି ମନୁଷ୍ୟ ନିଜେ ସୁଖର ଅପାର ଭଣ୍ଡାର ହୋଇଥିଲେ ମଧ୍ୟ ସୁଖ ପାଇବା ଲାଳସାରେ ଏଣେତେଣେ ଭ୍ରମି ହୋଇ ସାଂସାରିକ ସୁଖ ଭୋଗ ଓ ଧନାଦି ସଂଗ୍ରହରେ ଲିପ୍ତ ରହେ ଏବଂ ପରିଣାମରେ ଘୋର ଦୁଃଖ ପାଏ— **'ପରିଣାମେ ବିଷମିବ'** (ଗୀତା ୧୮ । ୩୮) ।

ସମସ୍ତ ଦୁଃଖର ମୂଳ କାରଣ ହେଉଛି—ନାଶବାନ୍ ସୁଖ ଉପଭୋଗ କରିବାର କାମନା । କାମନା ତ୍ୟାଗ ନ କରିବା ପର୍ଯ୍ୟନ୍ତ କୌଣସି ବ୍ୟକ୍ତି ସୁଖୀ ହୋଇ ପାରିବ ନାହିଁ—**'ସ ଶାନ୍ତିମାପ୍ନୋତି ନ କାମକାମୀ'** (ଗୀତା ୨ । ୭୦) । ସାଂସାରିକ ସୁଖ ପ୍ରତି ମନରେ ବସା ବାନ୍ଧିଥିବା କାମନା କଦାପି ଅଭ୍ୟାସ ଦ୍ୱାରା ଦୂର ହୁଏ ନାହିଁ, ବରଂ ପାରମାର୍ଥିକ ମାର୍ଗରୁ ସୁଖ ମିଳିବା ପରେ ଦୂର ହୋଇଥାଏ । ତେଣୁ ସାଧକ ନାମଜପ ଓ ଭଜନ-କୀର୍ତ୍ତନ କରିବା ତଥା ଭକ୍ତଚରିତ ଇତ୍ୟାଦି ଅଧ୍ୟୟନ କରିବାରେ ତତ୍ପର ରହିବା ଉଚିତ । ନାମଜପ ଇତ୍ୟାଦିରୁ ଯେତେବେଳେ ତାକୁ ଆନନ୍ଦ ଅନୁଭବ ହେବ, ସେତେବେଳେ ସାଂସାରିକ ସୁଖ ପ୍ରତି ଥିବା ଆସକ୍ତି ଆପେ ଆପେ ଦୂରେଇଯିବ । ପିଲାବେଳେ ନାଲି-ନୀଳ କାଚ ଓ ଗୋଲ ଗୋଲ ପଥରରେ ଖେଳିବାକୁ ଭଲ ଲାଗୁଥିଲା, କିନ୍ତୁ ଟିକିଏ ବଡ଼ ହେବାପରେ ପଇସା ଭଲ ଲାଗିବାରୁ ଆଉ କାଚ-ପଥର ଭଲ ଲାଗିଲା ନାହିଁ, ସେସବୁରୁ ମନ ଆପେ ଆପେ ଛାଡ଼ିଗଲା ।

ଅନ୍ୟମାନଙ୍କର ସେବା କରିବା ଏବଂ ଭଗବାନଙ୍କୁ ନିଜର ମାନିବା—ମୁଖ୍ୟତଃ ଏ ଦୁଇଟି କାର୍ଯ୍ୟ ସମ୍ପନ୍ନ କରିବା

ଉଦ୍ଦେଶ୍ୟରେ ହିଁ ମାନବଶରୀର ମିଳିଛି। ମନୁଷ୍ୟ ବ୍ୟତୀତ ଅନ୍ୟ କୌଣସି ଜନ୍ମରେ ଏ କାର୍ଯ୍ୟ କରିବାର ଯୋଗ୍ୟତା ତଥା ସାମର୍ଥ୍ୟ ନାହିଁ। ଭଗବାନ ମଧ୍ୟ ମନୁଷ୍ୟଠାରୁ ଏହି ଆଶା ରଖିଥାନ୍ତି ଯେ ସେ ଅନ୍ୟମାନଙ୍କର ସେବା କରିବ ଏବଂ ତାଙ୍କୁ ଆପଣାର ମନେକରି ତାଙ୍କ ସହିତ ସୁମଧୁର ପ୍ରେମ ସମ୍ପର୍କ ଅତୁଟ ରଖିବ। ମାଆ ତା' ଛୋଟ ପୁଅକୁ ପଗ୍ୱରେ ଯେ, କହିଲୁ ତୁ କାହା ପୁଅ! ପିଲାଟି ଖିନେଇ ଖିନେଇ କହେ— ମୁଁ ତୋ ପୁଅ! ସନ୍ତାନ ଠାରୁ 'ମାଆ' ଡାକ ଶୁଣିବାମାତ୍ରେ ମାଆର ହୃଦୟ ଆନନ୍ଦରେ ଫୁଲି ଉଠେ। ସେହିପରି ଭଗବାନ ମଧ୍ୟ ମନୁଷ୍ୟଠାରୁ ଶୁଣିବାକୁ ଗ୍ୱହାନ୍ତି ଯେ ମନୁଷ୍ୟ ତାଙ୍କୁ ଆପଣାର କହି ତାଙ୍କ ସହିତ ପ୍ରେମପୂର୍ଣ୍ଣ ସମ୍ବନ୍ଧ ସ୍ଥାପନ କରୁ।

ଆତ୍ମୀୟତା ବ୍ୟତୀତ ଭଗବତ୍‌ପ୍ରେମ ଲାଭ କରିବାର ଅନ୍ୟ କୌଣସି ଉପାୟ ନାହିଁ। 'କେବଳ ଭଗବାନ ହିଁ ମୋର ଆପଣାର ଏବଂ ମୁଁ କେବଳ ଭଗବାନଙ୍କର'—ଏତିକି ସ୍ୱୀକାର କରିନେଲେ ଭଗବାନ କୃପା କରି ଭକ୍ତକୁ ସାଧ୍ୟପ୍ରେମ ପ୍ରଦାନ କରନ୍ତି, ଯାହା କି ପ୍ରତିକ୍ଷଣ ବର୍ଦ୍ଧମାନ। ଏହି ସାଧ୍ୟପ୍ରେମ ଜାଗ୍ରତ ହେବାରେ ହିଁ ମାନବ-ଜୀବନର ପୂର୍ଣ୍ଣତା ନିହିତ।

ସାଧକମାନଙ୍କୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ—ମସ୍ତିଷ୍କପ୍ରଧାନ ବା ବିବେକପ୍ରଧାନ ସାଧକ ଏବଂ ହୃଦୟପ୍ରଧାନ ବା ଭାବପ୍ରଧାନ ସାଧକ। ବିବେକପ୍ରଧାନ ସାଧକ ବିବେକପୂର୍ବକ ସଂସାରକୁ ତ୍ୟାଗ କରନ୍ତି ଏବଂ ଭାବପ୍ରଧାନ ସାଧକ ସମଗ୍ର ସଂସାରକୁ ଭଗବତ୍‌ସ୍ୱରୂପ ଦେଖନ୍ତି। କାରଣ 'ସବୁ କିଛି ଭଗବାନ' ବୋଲି ଅନୁଭବ କରିବା ବିବେକର

ବିଷୟ ନୁହେଁ, ବରଂ ଭାବର ବିଷୟ। ବିବେକ ରହିଥିବା ପର୍ଯ୍ୟନ୍ତ ସତ୍ ଓ ଅସତ୍ ଉଭୟର ସତ୍ତା ରହିଥାଏ। ସେଥିପାଇଁ ବିବେକମାର୍ଗୀ ସାଧକ ସତ୍-ତତ୍ତ୍ୱକୁ (ପରମାତ୍ମାଙ୍କୁ) ଅସତ୍ ବା ସଂସାରଠାରୁ ପୃଥକ୍ କରି ଦେଖିଥାଏ। ଯେପର୍ଯ୍ୟନ୍ତ ସାଧକ ଦୃଷ୍ଟିରେ ଭଗବାନ ଓ ସଂସାର ମଧ୍ୟରେ ଭିନ୍ନତା ରହିଥାଏ, ସେପର୍ଯ୍ୟନ୍ତ ତା' ଜୀବନରେ ଅଖଣ୍ଡ ଆନନ୍ଦ ଅବସ୍ଥାନ କରିପାରେ ନାହିଁ। କେବେ କେବେ ତାକୁ ଆନନ୍ଦ ଅନୁଭବ ହୋଇଥାଏ ତ ଆଉ କେବେ କେବେ ନୀରସତା ଅନୁଭବ ହୁଏ। ସମୟେ ସମୟେ ତାକୁ ନିଜ ସାଧନାରେ ଅଧିକ ଉନ୍ନତି ଦେଖାଯାଏ ଏବଂ କେବେ କେବେ କୌଣସି ଉନ୍ନତି ଦୃଷ୍ଟିଗୋଚର ହୁଏ ନାହିଁ। ଏହାର ମୂଳ କାରଣ ହେଲା, ବିବେକମାର୍ଗରେ ତ୍ୟାଜ୍ୟ ବସ୍ତୁ (ଅସତ୍)ର ସତ୍ତା ବହୁ ଦୂର ପର୍ଯ୍ୟନ୍ତ ସାଧକ ସଙ୍ଗରେ ରହିଥାଏ। ଅପରପକ୍ଷେ ଭାବପ୍ରଧାନ ସାଧକ ଦୃଷ୍ଟିରେ ସତ୍-ଅସତ୍, ପରା-ଅପରା ସମେତ ସବୁକିଛି କେବଳ ଭଗବାନ ହୋଇଥାନ୍ତି—**'ସଦସଚ୍ଚାହମ୍'** (ଗୀତା ୯।୧୯); **'ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍'** (ଗୀତା ୭।୫)। ତେଣୁ ତା' ଦୃଷ୍ଟିରେ ତ୍ୟାଜ୍ୟ ବସ୍ତୁ ବୋଲି କିଛି ନ ଥାଏ। ସୁତରାଂ ଭାବପ୍ରଧାନ ସାଧନାରେ ସଂସାର ନ ରହି କେବଳ ଭଗବାନ ହିଁ ଅବଶେଷ ରହିଯାଆନ୍ତି—**'ବାସୁଦେବଃ ସର୍ବମ୍'** (ଗୀତା ୭।୧୯)। ଏ ମାର୍ଗର ସାଧକଙ୍କୁ ଅଖଣ୍ଡ ଆନନ୍ଦ ଅନୁଭବ ହେବା ସଙ୍ଗେ ସଙ୍ଗେ ଭଗବତ୍‌କୃପାରୁ ଅନନ୍ତ ଆନନ୍ଦ (ସାଧ୍ୟ-ପ୍ରେମ) ମଧ୍ୟ ଅନୁଭବ ହୋଇଥାଏ।

****

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୨. ସାଧକଙ୍କ ପ୍ରତି

ଥରକ ପାଇଁ ସରଳ ହୃଦୟରେ ଦୃଢ଼ତାର ସହିତ ସ୍ୱୀକାର କର ଯେ—

ସର୍ବକାଳରେ ମୁଁ ସ୍ୱୟଂ

**କେବଳ ଭଗବାନଙ୍କର ହିଁ** ଅଂଶ,

ଅନ୍ୟ କାହାରି ଅଂଶ ନୁହେଁ

**ତଥା**

ସର୍ବକାଳରେ

**କେବଳ ଭଗବାନ ହିଁ** ମୋର ଆପଣାର,

ଅନ୍ୟ କେହି ମୋର ଆପଣାର ନୁହନ୍ତି ।

## ଏହାର କାରଣ—

ଶରୀର ଓ ସଂସାର କଦାପି କାହା ସଙ୍ଗରେ ସବୁଦିନ ପାଇଁ ରହନ୍ତି ନାହିଁ; କାରଣ ଏମାନଙ୍କର ସତ୍ତା ବିଦ୍ୟମାନ ନୁହେଁ—**'ନାସତୋ ବିଦ୍ୟତେ ଭାବଃ'** (ଗୀତା ୨ । ୧୬)

ଏବଂ

ପରମାତ୍ମା କଦାପି କାହାର ସଙ୍ଗ ଛାଡ଼ନ୍ତି ନାହିଁ; କାରଣ ତାଙ୍କର ସତ୍ତା ନିତ୍ୟ ବିଦ୍ୟମାନ—**'ନାଭାବୋ ବିଦ୍ୟତେ ସତଃ'** (ଗୀତା ୨ । ୧୬) ।

# ସ୍ପଷ୍ଟୀକରଣ

**ଥରକ ପାଇଁ**—'ମୁଁ ଭଗବାନଙ୍କର ତଥା ଭଗବାନ ମୋର ଆପଣାର'—ଏହାକୁ ସ୍ୱୀକାର କରିବା ପାଇଁ ବାରମ୍ବାର ଅଭ୍ୟାସ କରିବା ଅଥବା ମାଳା ଗଡ଼େଇ ଗଡ଼େଇ ମନେ ରଖିବାର କୌଣସି ଆବଶ୍ୟକତା ନାହିଁ, କେବଳ ଥରେମାତ୍ର ହୃଦୟରେ ସ୍ୱୀକାର କରିନେଲେ ଯଥେଷ୍ଟ। ସ୍ୱୀକାର କରିବାରେ ଅଭ୍ୟାସ ଅଥବା କ୍ରିୟାର ସ୍ଥାନ ନାହିଁ। ସ୍ୱୀକୃତି ଥରକ ପାଇଁ ହୋଇଥାଏ ଏବଂ ସବୁଦିନ ପାଇଁ ହୋଇଥାଏ। ଏହାର କାରଣ ପୂର୍ବରୁ ଆମେ ଭଗବାନଙ୍କର ଆପଣାର ଥିଲେ ଏବଂ ଭଗବାନ ମଧ୍ୟ ଆମର ଆପଣାର ଥିଲେ। ଉଦାହରଣସ୍ୱରୂପ—ବିବାହ ମଣ୍ଡପରେ କନ୍ୟା ଥରକ ପାଇଁ ସ୍ୱାମୀଙ୍କୁ ନିଜର ମାନିଥାଏ। ତା'ପରେ ସେହି ସ୍ୱୀକୃତିକୁ ସୁଦୃଢ଼ କରିବା ପାଇଁ ତାକୁ ଅଭ୍ୟାସ କରିବାକୁ ପଡ଼ି ନ ଥାଏ।

**ସରଳ ହୃଦୟରେ**—ପ୍ରକୃତ ସ୍ୱୀକୃତି ସରଳ ହୃଦୟରେ ହିଁ ସ୍ଥାନ ପାଇଥାଏ। ଭଗବାନ ଭାବଗ୍ରାହୀ। ଭଗବାନଙ୍କ ସ୍ୱଭାବ ସରଳ ଏବଂ ସରଳ ସ୍ୱଭାବର ଭକ୍ତମାନେ ହିଁ ତାଙ୍କର ଅତ୍ୟନ୍ତ ପ୍ରିୟ—

**ନିଷ୍କିଞ୍ଚନା ବୟଂ ଶଶ୍ୱନ୍ନିଷ୍କିଞ୍ଚନଜନପ୍ରିୟାଃ।**

(ଶ୍ରୀମଦ୍‌ଭା. ୧୦।୬୦।୧୪)

**'ସରଲ ସୁଭାଉ ଛୁଅତ ଛଲ ନାହୀଁ'**

(ମାନସ, ବାଲ. ୨୩୭।୧)

**'ମୋହି କପଟ ଛଲ ଛିଦ୍ର ନ ଭାୱା'**

(ମାନସ, ସୁନ୍ଦର. ୪୪।୩)

ଅବୋଧ ଶିଶୁ ସରଳ ହୃଦୟରେ ମାଆକୁ ନିଜର ମନେକରେ । ମାଆକୁ ନିଜର ସ୍ୱୀକାର କରିବା ପାଇଁ ସେ କୌଣସି ପ୍ରମାଣ ଲୋଡ଼େ ନାହିଁ । ତାକୁ ଯଦି କେହି ପଗ୍ଚରିବ, ଇଏ ତୋର ମାଆ କିପରି ହେଲା? ତେବେ ସେ କେବଳ ଏତିକି କହିବ ଯେ "ହଁ, ସେ ମୋ ମାଆ!" ଏହା ହିଁ ସରଳ ହୃଦୟର ଉଦାହରଣ ।

ହୃଦୟପ୍ରଧାନ (ଭାବପ୍ରଧାନ) ଭକ୍ତଜନ ହିଁ ଭଗବାନଙ୍କ ସହିତ ଆତ୍ମୀୟ ସମ୍ବନ୍ଧ ସ୍ୱୀକାର କରିଥାନ୍ତି । ମସ୍ତିଷ୍କପ୍ରଧାନ (ବିବେକପ୍ରଧାନ) ସାଧକ ପକ୍ଷେ ଏପରି କରିବା କଠିନ ହୋଇଥାଏ । କାରଣ ବିବେକରେ ସ୍ୱୀକାର୍ଯ୍ୟ 'ସତ୍' ଓ ଅସ୍ୱୀକାର୍ଯ୍ୟ 'ଅସତ୍' ଉଭୟ ରହିଥାଏ । ଏଥିପାଇଁ ସାଧକ ମନରେ ସାଧନାର ଉଚ୍ଚ ସ୍ଥିତି ପର୍ଯ୍ୟନ୍ତ ଅସତ୍‌ର ସତ୍ତା ଜୀବିତ ରହିଥାଏ ।

**ଦୃଢ଼ତାର ସହିତ**—କୋହଳ ପ୍ରକୃତିର ମନୁଷ୍ୟ ଥରକରେ ଭଗବାନଙ୍କ ସହିତ ଆତ୍ମୀୟ ସମ୍ବନ୍ଧ ସ୍ୱୀକାର କରିପାରେ ନାହିଁ । ସେ ବାରମ୍ବାର ଚେଷ୍ଟାପୂର୍ବକ ଭଗବାନଙ୍କ ସହିତ ସମ୍ପର୍କ ସ୍ଥାପନ କରେ ଏବଂ ବାରମ୍ବାର ତାହାକୁ ଅବହେଳା କରି ପୁଣି ସଂସାରକୁ ନିଜର ମନେକରେ । ଏହିଭଳି ବାରମ୍ବାର ବିଗ୍ଚର ପରିବର୍ତ୍ତନ କରିବାର ଅଭ୍ୟାସ ହୋଇଯିବାରୁ ତା'ର ସଂସାର ସହିତ କଳ୍ପିତ ସମ୍ବନ୍ଧ ଛିନ୍ନ ହୋଇପାରେ ନାହିଁ । ଅତଏବ ସାଧକ ଯେଉଁ କଥାକୁ ଥରେ ସ୍ୱୀକାର କରିନେଲା, ସେଥିରେ ସେ ସବୁଦିନ ପାଇଁ ଅଟଳ ରହିବା ଆବଶ୍ୟକ । ସ୍ତ୍ରୀ ଯେପରି ସ୍ୱାମୀଙ୍କୁ ଦୃଢ଼ଭାବରେ ନିଜର ମାନିଥାଏ, ଏପରି କି ସ୍ୱାମୀଙ୍କ ମୃତ୍ୟୁ ପରେ ମଧ୍ୟ

ତାଙ୍କ ଠାରୁ ତା'ର ସମ୍ବନ୍ଧ ତୁଟେ ନାହିଁ, ସାଧକ ଠିକ୍ ସେହିପରି ସ୍ୱୀକାର କରିବା ଆବଶ୍ୟକ ।

ରାଜସ୍ଥାନର ହରଦୋଈ ଜିଲ୍ଲା ଅନ୍ତର୍ଗତ ଏକନୋରା ଗ୍ରାମରେ ଜଣେ ସ୍ତ୍ରୀଲୋକ ତା' ମାମୁଁଘରେ ରହୁଥିଲା । ତା' ସ୍ୱାମୀ ଅନ୍ୟ ଗୋଟିଏ ଗ୍ରାମରେ ରହୁଥାନ୍ତି । ସେଠାରେ ସେ ରୋଗରେ ପଡ଼ିଲେ ଏବଂ କିଛି ଦିନପରେ ମରିଗଲେ । ସ୍ତ୍ରୀକୁ ସ୍ୱାମୀଙ୍କ ମୃତ୍ୟୁ ସମାଗ୍ଚର ମିଳିବାମାତ୍ରେ ସେ ସ୍ୱାମୀଙ୍କ ଚିତାରେ ଝାସ ଦେଇ ସତୀ ହେବା ପାଇଁ ମାମୁଁଙ୍କ ନିକଟରେ ନିବେଦନ କଲା । ମାମୁଁ ଏପରି କରିବାକୁ ବାରଣ କରିବାରୁ ସେ ନିକଟରେ ଜଳୁଥିବା ଦୀପ ଶିଖାରେ ଅଙ୍ଗୁଳି ଦେଖାଇଦେଲା । ତା' ଆଙ୍ଗୁଠି ମହମବତୀ ଭଳି ଜଳିବାକୁ ଲାଗିଲା! ସେ ମାମୁଁଙ୍କୁ କହିଲା—ତୁମେ ଯଦି ମୋତେ ସତୀ ହେବାକୁ ଅନୁମତି ନ ଦେବ, ତୁମର ଘରଦ୍ୱାର ସବୁ ପୋଡ଼ି ଭସ୍ମ ହୋଇଯିବ । ମାମୁଁ କହିଲେ—ତୋର ଇଚ୍ଛା ଯାହା, ସେହିପରି କର । ସ୍ତ୍ରୀଲୋକଟି ଜଳନ୍ତା ଆଙ୍ଗୁଠିକୁ କାନ୍ଥରେ ରଗଡ଼ି ଲିଭାଇଦେଲା ଏବଂ ବାହାରକୁ ଯାଇ ଗୋଟିଏ ଓସ୍ତଗଛ ମୂଳରେ ଠିଆ ହୋଇଗଲା । ସେ ନିଆଁ ମାଗିବାରୁ ମାମୁଁ ମନା କରିଦେଲେ । ତା' ପରେ ସେ ଭଗବାନ ସୂର୍ଯ୍ୟଦେବଙ୍କୁ ଅଗ୍ନି ଦେବା ପାଇଁ ହାତଯୋଡ଼ି ପ୍ରାର୍ଥନା କଲା । କିଛି ସମୟ ପରେ ତା' ଦେହରେ ଆପେ ଆପେ ନିଆଁ ଲାଗିଗଲା ଏବଂ ସେ ସେହିଠାରେ ପୋଡ଼ି ଭସ୍ମ ହୋଇଗଲା! ସାଧକର ସ୍ୱୀକୃତି ଏହି ସତୀ ନାରୀର ସ୍ୱୀକୃତି ପରି ସୁଦୃଢ଼ ହେବା ଉଚିତ ।

**ସ୍ୱୀକାର କର**—ଭଗବାନଙ୍କ ସହିତ କୌଣସି ନୂତନ ସମ୍ବନ୍ଧ ସ୍ଥାପନ କରିବାର ଆବଶ୍ୟକତା ନାହିଁ । ତାଙ୍କ ସହିତ

ଅନାଦିକାଳରୁ ଆମର ସମ୍ବନ୍ଧ ରହି ଆସିଛି। ଆମେ ସର୍ବଦା ତାଙ୍କର ଏବଂ ସେ ସର୍ବଦା ଆମର। ସଂସାର ସହିତ ସମ୍ବନ୍ଧ ସ୍ୱୀକାର କରିବା କାରଣରୁ ଆମେ ଭଗବାନଙ୍କ ସହିତ ଥିବା ନିତ୍ୟସମ୍ବନ୍ଧକୁ ଭୁଲି ଯାଇଛୁ। ଅତଏବ କେବଳ ତାଙ୍କ ସହିତ ଥିବା ସମ୍ବନ୍ଧକୁ ସ୍ୱୀକାର କରିବାକୁ ହେବ। ଏହି ସମ୍ବନ୍ଧାତ୍ମକ ସ୍ୱୀକୃତି ସ୍ୱୟଂ ଦ୍ୱାରା ହୋଇଥାଏ, ବୁଦ୍ଧି ଦ୍ୱାରା ନୁହେଁ। ସ୍ୱୟଂ ଦ୍ୱାରା ସ୍ଥାପିତ ସମ୍ବନ୍ଧକୁ କଦାପି ଭୁଲି ହୁଏ ନାହିଁ। ଉଦାହରଣସ୍ୱରୂପ—ବିବାହ ମଣ୍ଡପରେ ସ୍ତ୍ରୀ ତା' ସ୍ୱାମୀଙ୍କୁ ଆପଣାର ମାନିନେବାପରେ ସ୍ୱପ୍ନରେ ମଧ୍ୟ ସେହି ସମ୍ବନ୍ଧକୁ ଭୁଲିପାରେ ନାହିଁ, ତାହା କଦାପି ବିସ୍ମୃତ ହୁଏ ନାହିଁ। ଶିଷ୍ୟ ଗୁରୁଙ୍କୁ ଗୁରୁ ବୋଲି ସ୍ୱୀକାର କରିନେବାପରେ ଆଉ କେବେ ସ୍ୱପ୍ନରେ ମଧ୍ୟ ସେହି ସମ୍ବନ୍ଧକୁ ପାସୋରିପାରେ ନାହିଁ।

**ସର୍ବକାଳରେ ମୁଁ ସ୍ୱୟଂ କେବଳ ଭଗବାନଙ୍କର ହିଁ ଅଂଶ**—ଗୀତାରେ ଭଗବାନ କହିଛନ୍ତି—'**ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ**' (୧୫।୭) ଅର୍ଥାତ୍ "ଏ ସଂସାରରେ ଜୀବ ପାଲଟିଥିବା ଆତ୍ମା ମୋର ହିଁ ସନାତନ ଅଂଶ।" ଅତଏବ ପ୍ରତ୍ୟେକ ଜୀବ ପୂର୍ବରୁ ଭଗବାନଙ୍କର ଅଂଶ ଥିଲେ, ଏବେ ମଧ୍ୟ ଅଂଶ ହୋଇ ରହିଛନ୍ତି ଏବଂ ଭବିଷ୍ୟତରେ ମଧ୍ୟ ଅଂଶ ହୋଇ ରହିବେ। କୌଣସି ଜୀବ କଦାପି କୌଣସି ପ୍ରକାରେ ବି ଭଗବାନଙ୍କ ଠାରୁ ପୃଥକ୍ ହୋଇ ପାରିବ ନାହିଁ। ସର୍ବସମର୍ଥ ଭଗବାନଙ୍କର ମଧ୍ୟ ଜୀବକୁ ନିଜଠାରୁ ପୃଥକ୍ କରିଦେବାର ସାମର୍ଥ୍ୟ ନାହିଁ।

**ଅନ୍ୟ କାହାରି ଅଂଶ ନୁହେଁ**—ଆମ ଶରୀର

ଗଠନରେ ମାତା ଓ ପିତା ଉଭୟଙ୍କର ଅଂଶ ରହିଛି; କିନ୍ତୁ ସ୍ୱୟଂ ଆତ୍ମା କେବଳ ଭଗବାନଙ୍କର ଅଂଶ **(ମମ ଏବ ଅଂଶଃ)**, ଏହାଠାରେ ପ୍ରକୃତିର ଅଂଶ ମିଶି ନାହିଁ। ଜୀବ ନିଜେ ପ୍ରକୃତିର ଅଂଶଭୂତ ଏହି ଶରୀର ଓ ସଂସାରକୁ ଜାବୁଡ଼ି ଧରି ଜନ୍ମ-ମରଣରୂପୀ ବନ୍ଧନରେ ପଡ଼ିଯାଇଛି।

**ସର୍ବକାଳରେ କେବଳ ଭଗବାନ ହିଁ ମୋର ଆପଣାର**—ଅଖିଳ ବ୍ରହ୍ମାଣ୍ଡରେ ଲେଶମାତ୍ର ଏପରି କୌଣସି ବସ୍ତୁ ନାହିଁ, ଯାହା ସର୍ବଦା ଆମ ସହିତ ରହି ପାରିବ ଏବଂ ଆମେ ତା' ସହିତ ରହି ପାରିବା। ପ୍ରତ୍ୟେକ ବସ୍ତୁ ଓ ବ୍ୟକ୍ତିଙ୍କ ସହିତ ସଂଯୋଗ ହୁଏ ଏବଂ ସେମାନଙ୍କ ଠାରୁ ବିୟୋଗ ମଧ୍ୟ ହୋଇଯାଏ। କିନ୍ତୁ ଭଗବାନଙ୍କ ସହିତ ପ୍ରତ୍ୟେକ ଜୀବର ସମ୍ବନ୍ଧ ସ୍ୱାଭାବିକ। କେହିହେଲେ ତାଙ୍କଠାରୁ କଦାପି ପୃଥକ୍ ହୋଇ ନାହିଁ, ହେବ ନାହିଁ କି ହୋଇ ପାରିବ ନାହିଁ। ସେଥିପାଇଁ ଭକ୍ତିମତୀ ମୀରାବାଈ ଦୃଢ଼ତାର ସହିତ ଭଗବାନଙ୍କୁ ଆପଣାର ସ୍ୱୀକାର କରି କହିଥିଲେ— ***'ମେରେ ତୋ ଗିରଧର ଗୋପାଲ, ଦୂସରୋ ନ କୋଈ।'***

**ଅନ୍ୟ କେହି ମୋର ଆପଣାର ନୁହନ୍ତି**—ମାତା, ପିତା, ସ୍ତ୍ରୀ, ପୁତ୍ର, ଭାଇ ପ୍ରଭୃତି କେହି ହେଲେ ଆପଣାର ନୁହନ୍ତି। ଆମେ ଯେହେତୁ ସେମାନଙ୍କର ସେବା କରିବୁ, କେବଳ ସେହି ଦୃଷ୍ଟିରୁ ସେମାନେ ଆମର ଆପଣାର। ଯଦି ବାସ୍ତବରେ ସେମାନେ ଆପଣାର ହୋଇଥାନ୍ତେ, ତେବେ କଦାପି ଆମଠାରୁ ବିଯୁକ୍ତ ହୋଇପାରନ୍ତେ ନାହିଁ। ଭଗବାନଙ୍କ ବ୍ୟତୀତ ଅନ୍ୟ ସବୁକିଛି ମିଳିଛି ଓ ଦିନେ ଛାଡ଼ି ଚ୍ଛାଲିଯିବ। ସୁତରାଂ ସେସବୁ ଆମର ଆପଣାର ନୁହନ୍ତି।

ଭଗବାନ କହିଛନ୍ତି—ଅସତ୍‌ର ଭାବ ବା ସତ୍ତା ବିଦ୍ୟମାନ ନାହିଁ ଏବଂ ସତ୍‌ର ଅଭାବ ବିଦ୍ୟମାନ ନାହିଁ—**‘ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ’** (୨ । ୧୬) । କହିବାର ଉଦ୍ଦେଶ୍ୟ ହେଲା, କୌଣସି ବ୍ୟକ୍ତି ସଂସାରକୁ ଯେତେ ଦୃଢ଼ଭାବରେ ସ୍ୱୀକାର କରୁ ନା କାହିଁକି, ସଂସାରର ସତ୍ତା ଆଦୌ ବିଦ୍ୟମାନ ନୁହେଁ । ତାହା ସର୍ବଦା ଅପ୍ରାପ୍ତ ଅଟେ ଏବଂ କଦାପି କାହାରିକୁ ପ୍ରାପ୍ତ ହୋଇ ପାରିବ ନାହିଁ । କିନ୍ତୁ ଭଗବାନଙ୍କୁ କେହି ଯେତେ ଅସ୍ୱୀକାର କଲେ ମଧ୍ୟ ତାଙ୍କର ସତ୍ତା ସର୍ବଦା ବିଦ୍ୟମାନ ରହିବ । ସେ ସମସ୍ତଙ୍କୁ ସର୍ବଦା ପ୍ରାପ୍ତ । ଭଗବାନ କଦାପି କାହାରିକୁ ଅପ୍ରାପ୍ତ ହୋଇ ପାରିବେ ନାହିଁ । ସୁତରାଂ ସ୍ୱପ୍ନରେ ମଧ୍ୟ ଯାହା ସହିତ କଦାପି ସମ୍ବନ୍ଧ ହୋଇ ନାହିଁ, ସାଧକ ତା’ଠାରୁ ସମ୍ବନ୍ଧ ତୁଟାଇଦେବା ଉଚିତ ଏବଂ ଯାହାଙ୍କ ଠାରୁ କଦାପି ସମ୍ବନ୍ଧ ତୁଟି ନାହିଁ, ତାଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବା ଉଚିତ । ଯାହା ଆପେ ଆପେ ଛାଡ଼ି ଚାଲିଯାଉଛି, ତାହାକୁ ଛାଡ଼ିବାକୁ ହେବ ଏବଂ ଯେ ଆମକୁ ସର୍ବଦା ପ୍ରାପ୍ତ, ତାଙ୍କୁ ହିଁ ପାଇବାକୁ ହେବ ।

****

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୩. ଜାଣିବା ଓ ମାନିବା

## ଆଖି ଖୋଲି ଦେଖ ଏବଂ ଜାଣ

କୌଣସି ସମୟରେ ମଧ୍ୟ ସମଗ୍ର ସଂସାରରେ ମୋର ହୋଇ କୌଣସି ପ୍ରାଣୀ ବା ପଦାର୍ଥ ନାହିଁ ତଥା କାହାରି ସହିତ ମୋର କୌଣସି ପ୍ରକାର ସମ୍ବନ୍ଧ ନାହିଁ; କାରଣ କୌଣସି ପ୍ରାଣୀ ବା ପଦାର୍ଥ ମୋ ସଙ୍ଗରେ ସବୁ ସମୟ ପାଇଁ ରହନ୍ତି ନାହିଁ। ତେଣୁ କାହାରିଠାରୁ ମୋର କଦାପି କିଛି ଆବଶ୍ୟକ ନାହିଁ।

## ଆଖି ବୁଜି ଶୁଣ ଏବଂ ମାନ

ସର୍ବକାଳରେ ସମଗ୍ର ସଂସାର ଏକମାତ୍ର ଭଗବାନଙ୍କର ହିଁ ସ୍ୱରୂପ; ତାଙ୍କ ବ୍ୟତୀତ ଆଉ କିଛି ନାହିଁ।

—ଏହା ସର୍ବୋତ୍ତମ ସାଧନା; କିନ୍ତୁ ଅନେକ ଲୋକ ଏ ବିଷୟରେ ଅପରିଚିତ। କେତେକ ଜାଣିଥିଲେ ମଧ୍ୟ ଅନୁଭବ କରି ପାରନ୍ତି ନାହିଁ; କାରଣ ଏହା ପୁରୁଷାର୍ଥସାଧ୍ୟ ନୁହେଁ। ଏହା କେବଳ କୃପାସାଧ୍ୟ। ଭଗବତ୍‌କୃପା ତଥା ସନ୍ତକୃପା ବଳରେ ହିଁ ଏହା ଅନୁଭବ ହୋଇଥାଏ।

****

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୪. ପାଞ୍ଚଟି ପ୍ରମୁଖ ସାଧନାମୃତ

**ନିମ୍ନୋକ୍ତ ସାଧନାମୃତଙ୍କୁ**

**ଥରକ ପାଇଁ ସରଳ ହୃଦୟରେ**

**ଦୃଢ଼ତାର ସହିତ ସ୍ୱୀକାର କର ଯେ—**

## ପଞ୍ଚାମୃତ

୧. ମୁଁ (ସ୍ୱୟଂ) ସର୍ବଦା ଭଗବାନଙ୍କର ହିଁ ଅଂଶ ଅଟେ ।

୨. ମୁଁ ସର୍ବଦା ଅବିନାଶୀ ଅଟେ ।

୩. ମୁଁ ସର୍ବଦା ଚେତନ ଅଟେ ।

୪. ମୁଁ ସର୍ବଦା ଅମଳ (ନିର୍ଦ୍ଦୋଷ) ଅଟେ ।

୫. ମୁଁ ସର୍ବଦା ସହଜ ସୁଖରାଶି ଅଟେ ।

## ଚତୁଷ୍ଟୟାମୃତ

୧. ଭଗବାନ କଦାପି ମୋର ସଙ୍ଗ ଛାଡ଼ି ନାହାନ୍ତି ।

୨. ଭଗବାନ କଦାପି ମୋର ସଙ୍ଗ ଛାଡ଼ନ୍ତି ନାହିଁ ।

୩. ଭଗବାନ କଦାପି ମୋର ସଙ୍ଗ ଛାଡ଼ିବେ ନାହିଁ ।

୪. ଭଗବାନ କଦାପି ମୋର ସଙ୍ଗ ଛାଡ଼ି ପାରିବେ ନାହିଁ ।

## ତ୍ର୍ୟାମୃତ

**ସମସ୍ତେ ଭଗବାନଙ୍କର ଆତ୍ମୀୟ;** ଅତଏବ—

୧. ଭଗବାନଙ୍କର ହୋଇଥିବା ଦୃଷ୍ଟିରୁ ମୁଁ କାହାକୁ **ମନ୍ଦ ଭାବିବି ନାହିଁ।**

୨. ଭଗବାନଙ୍କର ହୋଇଥିବା ଦୃଷ୍ଟିରୁ ମୁଁ କାହାରି **ମନ୍ଦ ପାଞ୍ଚିବି ନାହିଁ।**

୩. ଭଗବାନଙ୍କର ହୋଇଥିବା ଦୃଷ୍ଟିରୁ ମୁଁ କାହାରି **ମନ୍ଦ କରିବି ନାହିଁ।**

## ଦ୍ୱ୍ୟାମୃତ

୧. ମୁଁ କେବଳ **ଭଗବାନଙ୍କର।**

୨. କେବଳ **ଭଗବାନ** ହିଁ ମୋର ଆପଣାର।

## ଏକାମୃତ

୧. ସମଗ୍ର ସଂସାର ସର୍ବଦା **ଭଗବାନଙ୍କର ହିଁ ସ୍ୱରୂପ,** ତାଙ୍କ ବ୍ୟତୀତ ଆଉ କିଛି ହେଲେ ନାହିଁ—**'ବାସୁଦେବଃ ସର୍ବମ୍'।**

ଉପର୍ଯ୍ୟୁକ୍ତ ସାଧନାମୃତ ମଧ୍ୟରୁ କୌଣସି ଗୋଟିକୁ ସ୍ୱୀକାର କରିନେଲେ ମାନବଜୀବନ ସଫଳ ହୋଇଯିବ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୪. ଜ୍ଞାନ ଓ ଭକ୍ତି

ଏକମାତ୍ର ପରମାତ୍ମସତ୍ତା ହିଁ

'ଅସ୍ତି'-

ରୂପରେ ବିଦ୍ୟମାନ—
ଏହା ହେଉଛି ଜ୍ଞାନ

ଏବଂ

ସେହି

'ଅସ୍ତି'

ହିଁ ମୋର ଆପଣାର—
ଏହା ହେଉଛି ଭକ୍ତି ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୬. ସାବଧାନ

## ଶରୀର ଓ ସଂସାର—

କଦାପି କାହା ସଙ୍ଗରେ ରହି ନାହାନ୍ତି ।

କଦାପି କାହା ସଙ୍ଗରେ ରହନ୍ତି ନାହିଁ ।

କଦାପି କାହା ସଙ୍ଗରେ ରହିବେ ନାହିଁ ।

କଦାପି କାହା ସଙ୍ଗରେ ରହି ପାରିବେ ନାହିଁ ।

## ମନେ ରଖ

## ପରମାତ୍ମା—

କଦାପି କାହାରି ସଙ୍ଗ ଛାଡ଼ି ନାହାନ୍ତି ।

କଦାପି କାହାରି ସଙ୍ଗ ଛାଡ଼ନ୍ତି ନାହିଁ ।

କଦାପି କାହାରି ସଙ୍ଗ ଛାଡ଼ିବେ ନାହିଁ ।

କଦାପି କାହାରି ସଙ୍ଗ ଛାଡ଼ି ପାରିବେ ନାହିଁ ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୭. କାମ-ବିନାଶର ସରଳ ଉପାୟ

ଭଗବତ୍‌ପ୍ରେମ ଲାଭ କରିବାର ଆବଶ୍ୟକତା ହୃଦୟରେ ଅନୁଭବ ହେବା ହିଁ ପ୍ରତ୍ୟେକ ମାନବର ବାସ୍ତବିକ ଆବଶ୍ୟକତା ଏବଂ ଏହା ନିଶ୍ଚିତରୂପେ ପୂର୍ଣ୍ଣ ହୋଇଥାଏ । ମନୁଷ୍ୟ ଅନ୍ତରରେ ଯେତେବେଳେ ପ୍ରେମପ୍ରାପ୍ତି ପାଇଁ ପ୍ରବଳ ଉତ୍କଣ୍ଠା ଜାଗ୍ରତ ହେବ, ସେତେବେଳେ ହିଁ ଏହି ଭୁଲଜନିତ କାମ-ବାସନା ସମୂଳେ ନଷ୍ଟ ହେବ ।*

ଯେପର୍ଯ୍ୟନ୍ତ ସାଂସାରିକ କ୍ରିୟା ଓ ପଦାର୍ଥରୁ ସୁଖ ମିଳୁଥିବ, ସେପର୍ଯ୍ୟନ୍ତ ହୃଦୟରେ **'କାମ'** ସ୍ଥାନ ଅଧିକାର କରି ରହିଥିବ ।

ଭଗବାନଙ୍କ ନାମ, ରୂପ, ଲୀଳା ଓ ଭଜନରୁ ଆନନ୍ଦ ଅନୁଭବ ହେଲେ ସାଂସାରିକ ରସ (କାମ-ବାସନା) ନଷ୍ଟ ହୋଇଯାଏ ଏବଂ ଅବିନାଶୀ ରସ (ପରମ ପ୍ରେମ) ଜାଗ୍ରତ ହୋଇଯାଏ । ଏଇଥିରେ ହିଁ **ମାନବଜୀବନର ପୂର୍ଣ୍ଣତା ନିହିତ—**

**ପ୍ରେମ ଭଗତି ଜଲ ବିନୁ ରଘୁରାଈ । ଅଭିଅଂତର ମଲ କବହୁଁ ନ ଜାଈ ॥**

(ମାନସ, ଉତ୍ତର. ୪୯ । ୩)

****

---

* ସାଧକକୁ ନିଜଠାରେ ଯେତିକିମାତ୍ରାରେ ନ୍ୟୂନତା ଅନୁଭବ ହେଉଥାଏ, ତା'ଠାରେ ସେତିକି ପରାଶ୍ରୟ ଓ ପରିଶ୍ରମ ରହିଛି ବୋଲି ବୁଝିବାକୁ ହେବ ।

ଜୀବନରେ ଭଗବଦାଶ୍ରୟ ଓ ବିଶ୍ରାମ ଅନୁଭବ ହୋଇଗଲେ ମାନବଜୀବନ ପୂର୍ଣ୍ଣତ୍ୱ ଲାଭ କରିବ ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୮. 'ନାସ୍ତି' ଓ 'ଅସ୍ତି'

## ନାସତୋ ବିଦ୍ୟତେ ଭାବଃ

ରାମ ରାମ ରାମ ରାମ ରାମ ରାମ ରାମ

॥ ଶ୍ରୀହରିଃ ॥

## ଶରୀର ଓ ସଂସାର

## ○ 'ନାସ୍ତି' ○

## ରୂପ

ରାମ ରାମ ରାମ ରାମ ରାମ ରାମ

## ନଷ୍ଟୋ ମୋହଃ

ନାଭାବୋ ବିଦ୍ୟତେ ସତଃ

ରାମ ରାମ ରାମ ରାମ ରାମ ରାମ ରାମ

।। ଶ୍ରୀହରିଃ ।।

# ପରମାତ୍ମା

## 'ଅସ୍ତି'

# ରୂପ

ରାମ ରାମ ରାମ ରାମ ରାମ ରାମ ରାମ

ସ୍ତୁତିର୍ଲବ୍ଧା

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୯. ସାଧକ-ପଞ୍ଚାମୃତ




ଥରକ ପାଇଁ ସରଳ ହୃଦୟରେ
ଦୃଢ଼ତାର ସହିତ ସ୍ୱୀକାର କର ଯେ—

୧. ମୁଁ (ସ୍ୱୟଂ) ସର୍ବଦା ଭଗବାନଙ୍କର ହିଁ ଅଂଶ ଅଟେ।

୨. ମୁଁ ସର୍ବଦା ଅବିନାଶୀ ଅଟେ।

୩. ମୁଁ ସର୍ବଦା ଚେତନ ଅଟେ।

୪. ମୁଁ ସର୍ବଦା ଅମଳ (ନିର୍ଦ୍ଦୋଷ) ଅଟେ।

୫. ମୁଁ ସର୍ବଦା ସହଜ ସୁଖରାଶି ଅଟେ।

✻✻✻✻

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ୧୦. ସତ୍ୟ ଓ ଅକାଟ୍ୟ ସିଦ୍ଧାନ୍ତ

ଯଦି ତୁମକୁ ଦୁଃଖ, ଅଶାନ୍ତି ଓ ବିପଦ ଭଲ ଲାଗେ, ତେବେ **ଶରୀର ଓ ସଂସାର ସହିତ** ସମ୍ବନ୍ଧ ସ୍ଥାପନ କର; ଏମାନଙ୍କୁ ଆପଣାର ଭାବ

ଏବଂ

ଯଦି ସୁଖ, ଶାନ୍ତି, ଆନନ୍ଦ ଓ ମଉଜ ଭଲ ଲାଗେ, ତେବେ **ଭଗବାନଙ୍କ ସହିତ** ସମ୍ବନ୍ଧ ସ୍ଥାପନ କର; ତାଙ୍କୁ ଆପଣାର ଭାବ ।

**ନିର୍ଣ୍ଣୟ ତୁମ ହାତରେ !**

*ଶ୍ରଦ୍ଧେୟ ସ୍ୱାମୀ ଶ୍ରୀ ରାମସୁଖଦାସଜୀ ମହାରାଜଙ୍କ ପ୍ରବଚନରୁ ଉଦ୍ଧୃତ*

ଆଶ୍ୱିନ କୃଷ୍ଣପକ୍ଷ ତ୍ରୟୋଦଶୀ, ସଂବତ୍ ୨୦୬୦, ସନ୍ଧ୍ୟା ଘ. ୩.୩୦, ଗୀତାଭବନ (ସ୍ୱର୍ଗାଶ୍ରମ, ଋଷିକେଶ)

ଆଜିକାଲି କେହି ଯଦି ସୈନ୍ୟବାହିନୀରେ ଭର୍ତ୍ତି ହେବାକୁ ଚାହିଁବ, ତାକୁ ଭଲଭାବରେ ପରୀକ୍ଷାନିରୀକ୍ଷା କରାଯିବ; ତା'ର ଯୋଗ୍ୟତା, ଅବସ୍ଥା, ସ୍ୱାସ୍ଥ୍ୟ ଇତ୍ୟାଦି ଦେଖାଯିବ । କିନ୍ତୁ ଭଗବାନ ଶ୍ରୀରାମଙ୍କ ସୈନ୍ୟବାହିନୀରେ ଭାଲୁ, ମାଙ୍କଡ଼ ପ୍ରଭୃତି ଭର୍ତ୍ତି ହୋଇଗଲେ! ଭଗବାନଙ୍କ ସୈନ୍ୟବାହିନୀରେ ଭର୍ତ୍ତି ହେବା ପାଇଁ କୌଣସି ସର୍ତ୍ତ ନାହିଁ ଯେ ଅମୁକ ଅମୁକ ଯୋଗ୍ୟତା ଓ ଅବସ୍ଥା ଥିବା ଦରକାର । ଭଗବାନଙ୍କ ଦରବାରରେ ଧ୍ରୁବ, ପ୍ରହ୍ଲାଦ ପ୍ରଭୃତି ଛୋଟ ଛୋଟ ପିଲା ମଧ୍ୟ ଭର୍ତ୍ତି ହୋଇଗଲେ, ଜଟାୟୁ ପ୍ରଭୃତି ପକ୍ଷୀ ମଧ୍ୟ ଭର୍ତ୍ତି ହୋଇଗଲେ, ପଥର ପାଲଟି ଯାଇଥିବା ଅହଲ୍ୟା ମଧ୍ୟ ଭର୍ତ୍ତି ହୋଇଗଲା, ନେତ୍ରହୀନ ସୂରଦାସ ମଧ୍ୟ ଭର୍ତ୍ତି ହୋଇଗଲେ! ସୂରଦାସଙ୍କୁ କିଛି ଦେଖାଯାଉ ନ ଥିଲା, ଅଥଚ ସେ ସୂର୍ଯ୍ୟଙ୍କ ପରି ହୋଇଗଲେ—**'ସୂର ସୂର ତୁଲସୀ ଶଶୀ'!** ଭଗବାନଙ୍କ ଦରବାର ସମସ୍ତଙ୍କ ପାଇଁ ସର୍ବଦା ଉନ୍ମୁକ୍ତ!

—*'ଈଶ୍ୱରମୟ ଏ ଜଗତ'* ପୁସ୍ତକରୁ ଉଦ୍ଧୃତ

---

ପରମାତ୍ମା କେବଳ ତୀବ୍ର ଇଚ୍ଛା ବଳରେ ମିଳନ୍ତି । ତାଙ୍କୁ ବାଧା ଦେବାକୁ କାହାରି ସାମର୍ଥ୍ୟ ନାହିଁ । ଅବୋଧ ଶିଶୁ ରାହା ଧରି କାନ୍ଦିଲେ ମାଆ ଆସି ତାକୁ କୋଳ କରେ । ଶିଶୁ ଘରକାମ ତ କରେ ନାହିଁ, ବରଂ ସେଥିରେ ଅସୁବିଧା ସୃଷ୍ଟି କରେ । ତଥାପି ସେ କାନ୍ଦିଲେ ଘରର ସବୁ ଲୋକ ତା' ପକ୍ଷ ହୋଇଯାଆନ୍ତି । ଶାଶୁ, ଶ୍ୱଶୁର, ଦିଅର, ଯାଆ ସମସ୍ତେ ମାଆକୁ କହନ୍ତି—''ପିଲାଟା କାନ୍ଦୁଛି, ପ୍ରଥମେ ଯାଇ ତାକୁ ତୁନି କର ।'' ସବୁ କାମ ଛାଡ଼ି ମାଆ ତାକୁ କୋଳ କରିଥାଏ । କାନ୍ଦିବା ହିଁ ଶିଶୁର ଏକମାତ୍ର ବଳ—**'ବାଳାନାଂ ରୋଦନଂ ବଳମ୍'** । ଆପଣ ହୃଦୟର ସହ ବ୍ୟାକୁଳ ହୋଇ ଭଗବାନଙ୍କ ପାଇଁ କାନ୍ଦିଲେ ଭଗବାନଙ୍କର ଭକ୍ତଗଣ ଓ ସନ୍ଥମହାତ୍ମାଗଣ ଆପଣଙ୍କ ପକ୍ଷ ହୋଇଯିବେ ଏବଂ 'ଭକ୍ତକୁ କାହିଁକି ଦେଖା ଦେଉ ନାହଁ' ବୋଲି କହି ଭଗବାନଙ୍କୁ ଉପାଳମ୍ଭ ଦେବେ ।

—*'ସର୍ବଜନ ହିତ ପନ୍ଥା'* ପୁସ୍ତକରୁ ଉଦ୍ଧୃତ